

ଟ 7.00

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ନିଜ ପାଦରେ ନିଜ କୁରାଢ଼ି

ବି.କେ. ସିହ୍ନା

ସୁଭାଷ ଚନ୍ଦ୍ରା

Printed at Diamond Lithographers, Naraina, Delhi-110028.

ISBN - 81-237-1426-2
1995 (ଶକାବ୍ଦ 1917)

ଟ 7.00
Apna Hi Pairon Par Kulhadi (*Oriya*)
ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍‌ପାର୍କ, ନୂଆଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।



ନବସାକ୍ଷର ସାହିତ୍ୟମାଳା

# ନିଜ ପାଦରେ ନିଜ କୁରାଢ଼ି

ବି. କେ. ସିହ୍ନା * ସୁଭାଷ ଚନ୍ଦ୍ରା

ଅଳଙ୍କରଣ
ଶୈବାଳ ଚାଟର୍ଜୀ

ଅନୁବାଦ
ବଂଶୀଧର ସାହୁ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ବହୁତ ଦିନ ତଳର କଥା ।
ସେତେବେଳେ ମଣିଷ ଏ ମାଟିରେ ପହିଲି ଥର ଜନମ ନେଇଥିଲା ।
ସେ ଗଛ ଛାଇ ତଳେ ହିଁ ଜନମ ନେଇଥିଲା ।
ବଣ ଥିଲା ତା'ର ଘର ।
ବଣ ବି ଥିଲା ତା'ର ଦୁନିଆ ।



ମଣିଷ ବଣରେ ବୁଲୁଥିଲା । ପଶୁ ଶିକାର କରୁଥିଲା । ଫଳମୂଳ ଖାଇ ପେଟ ଭରୁଥିଲା । ତା'ପରେ ତା'ର ବିକାଶ ହେଲା । ତା' ବିକାଶର କାହାଣୀ ଏହି ବଣରୁ ହିଁ ଆରମ୍ଭ ହୋଇଥିଲା । ବଣ ତାକୁ ସବୁକିଛି ଦେଲା । ଖାଇବାକୁ ଦେଲା । ପିନ୍ଧିବାକୁ ଆଉ ରହିବାକୁ ବି ଦେଲା ।



ଏହି ବଣରେ ମଣିଷ ଜୀବନର ଆରମ୍ଭ ହେଲା । ଧିରେଧିରେ ମଣିଷ ପରିବାରରେ ଏବଂ ସମାଜରେ ରହିବାକୁ ଲାଗିଲା । ସେ ଘର ତିଆରି କଲା । ଗାଈ, ଛେଳି ଓ ମେଣ୍ଢା ଆଦି ପାଳିବାକୁ ଲାଗିଲା । ସେ ଏମାନଙ୍କ କ୍ଷୀର ପିଇଲା । ଯେବେ ଚାହିଁଲା, ଏମାନଙ୍କୁ ମାରି ଆହାର କଲା ।



ଧିରେ ଧିରେ ମଣିଷ ଜାତି ବଢ଼ିଲା । ମଣିଷ ବଣରୁ ଆସି ନଈକୂଳରେ ରହିବାକୁ ଲାଗିଲା । ନଈ-ପଠାରେ ଗାଁ ବସାଇଲା । ତା'ପରେ ଅନେକ ଛୋଟ ଛୋଟ ସହର ଗଢ଼ି ଉଠିଲା । ଏହିପରି ଭାବରେ ଗାଁ ଏବଂ ସହର ବଢ଼ିବାକୁ ଲାଗିଲା ।

ହେଲେ ମଣିଷର ବଣ ସାଥିରେ ଭାବ ଲାଗି ରହିଲା । କାରଣ ତାଙ୍କୁ ବଞ୍ଚି ରହିବା ଲାଗି ବଣରୁ ସବୁକିଛି ମିଳୁଥିଲା । ଘର ତିଆରି ଲାଗି କାଠ, ଜାଳେଣି, ଜଡ଼ିବୁଟି ଏବଂ ମହୁ ମିଳୁଥିଲା । ଗାଈଗୋରୁଙ୍କୁ ଚାରା ଖୁଆଇବା ଲାଗି ସେ ବଣ ଉପରେ ଭରସା କରୁଥିଲା ।



ଆମର ମୁନୀ ଋଷିମାନଙ୍କୁ ବଣର ପରିବେଶ ବହୁତ ଭଲ ଲାଗୁଥିଲା । ଏଣୁ ସେମାନେ ବଣରେ ଗଛତଳେ ବସି ଧ୍ୟାନ କରୁଥିଲେ । ସେମାନଙ୍କୁ ନୂଆ ଚେତନା ମିଳୁଥିଲା । ଭଗବାନ ବୁଦ୍ଧ ବି ଗଛତଳେ ବସି ତପସ୍ୟା କରିଥିଲେ । ତାଙ୍କୁ ନୂଆ ଚେତନା ମିଳିଥିଲା ।

ଆମର ଗୁରୁମାନେ ବଣରେ ତାଙ୍କର ଶିଷ୍ୟଙ୍କୁ ପାଠ ପଢ଼ାଉ ଥିଲେ । ରାମ, ଲକ୍ଷ୍ମଣ ଓ ଲବକୁଶ ଆଦି ବଣରେ ଥାଇ ପାଠ ପଢ଼ିଥିଲେ । ରାମାୟଣ ଓ ମହାଭାରତ ରଚନା ଏହି ବଣରେ ହିଁ ହୋଇଥିଲା । ଋଷିମାନେ ବଣର ନୀରବ ପରିବେଶରେ ଅନେକ ବଡ଼ ବଡ଼ ବହି ରଚନା କରିଥିଲେ ।

ଏହିପରି ଗଛ ଏବଂ ବଣ ନିଜ ନିଜ ଭିତରେ ସାହାଯ୍ୟ କରିଆସୁଛନ୍ତି । ବଡ଼ି ମରୁଡ଼ିରେ ଗଛ ସାହା ହେଉଛି । ପବନକୁ ସଫା ରଖୁଛି । ଆମକୁ ଭଲ ନିଶ୍ୱାସ ମିଳିବା ଫଳରେ ଆମେ ଅଧିକ ଦିନ ଜୀଇଁ ପାରୁଛୁ ।

ଖାଲି ଏତିକି ନୁହେଁ । ବଣ ଆମକୁ ଆହୁରି କେତେ ସାହାଯ୍ୟ କରୁଛି । ମାଟି ବୋହିଯିବା ରୋକୁଛି । ମାଟିର ଉର୍ବରତା ବଢ଼ାଉଛି । ଜମିକୁ ଠିକ୍ ସମୟରେ ପାଣି ମିଳୁଛି । ଫଳରେ ଆମକୁ ଖାଇବାପାଇଁ ମିଳୁଛି । ପନିପରିବା ଏବଂ ଫଳମୂଳ ଆଦି ମିଳିଯାଉଛି । ଖାଲି ଏତିକି ନୁହେଁ । ଗାଈଗୋରୁ ମାନଙ୍କୁ ଚରିବା ଲାଗି ଚରାଭୂଇଁ ଦେଉଛି । ପଶୁପକ୍ଷୀ ମାନଙ୍କୁ ଭଲରେ ରଖୁଛି ।







ଟିକିଏ ଭାବିଲେ, କେଡେ ମଜାରେ ଆମ କହ୍ନେଇ ବଇଁଶୀ ବଜଉଥିବେ ? ସେତିକି ଖୁସିରେ ସେତେବେଳେ ଗାଈମାନେ ବଣରେ ଆରାମରେ ଚରୁଥିବେ ।

ଆମ ଦେଶ ଭାରତର ଏକ ବିଶାଳ ଭାଗ ବଣରେ ଭରାଥିଲା । ଯୁଆଡ଼େ ଚାହିଁବ ଶାଗୁଆ ଦେଖାଯାଉଥିଲା । ସବୁଆଡ଼ ସଫା ଆଉ ଶାନ୍ତ ଥିଲା । ମଣିଷ ଚାହୁଁଥିଲା, ତା'ର ଜନମ୍ ଏ ଦେଶରେ ଥରକୁଥର ହେଉ ।



ହେଲେ ଏ ଦେଶର ଲୋକ ପରିମାଣ ଦିନକୁଦିନ ବଢ଼ିଚାଲିଛି । ଛୋଟ ଗାଁ ବା ବଡ଼ ସହର ସବୁ ଜାଗାରେ ଲୋକ ପରିମାଣ ବଢ଼ିଚାଲିଛି । ଏବେ ଏମିତି ଲାଗୁଛି ଯେ ଲୋକ ମାନଙ୍କର ସାଗର ମାଡ଼ି ଆସୁଛି । ଆଉ ଏ ସାଗର ଦିନକୁଦିନ ବଢ଼ିବାରେ ଲାଗିଛି । ଏ ସମୟରେ ବଣର ହିଁ ସବୁଠାରୁ ବେଶୀ ହାନି ହେଉଛି । ଏତେଗୁଡ଼େ ଲୋକଙ୍କପାଇଁ ରହିବାପାଇଁ ଜାଗା, ଘର ତିଆରି ପାଇଁ କାଠ ନିହାତି ଦରକାର । ହେଲେ ମଣିଷ ନିଷ୍ଠୁର ଭାବରେ ବଣକୁ କାଟି ସଫା କରିବାରେ ଲାଗିଛି । ବଡ଼ ବଡ଼ ଗଛମାନଙ୍କୁ କାଟି ବଣର ସୁନ୍ଦରତାକୁ ମାରିଦେଉଛି । ଯାହାଫଳରେ ସବୁଜ ଗଛଲତାର ବିଲୋପ ଘଟିବାକୁ ଲାଗିଛି ।

ଆଗକୁ ଏହାର ଫଳାଫଳ କଣ ହେବ, ଆମ ସଭିଙ୍କୁ ଭଲଭାବରେ ଜଣା । ସବୁ ବରଷ ଲଗାତାର ଭାବରେ ବଢ଼ିମରୁଡ଼ି ଲାଗିରହିଛି । ବରଷାର ଅଭାବ । ବାତାବରଣ ଦୂଷିତ ହୋଇପଡୁଛି । ଯାହାଫଳରେ ମଣିଷକୁ ଖରାପ ପବନ ନିଶ୍ୱାସରେ ନେବାକୁ ପଡୁଛି । କିଏ ଜାଣେ, ଆଗରେ ଆଉ କ'ଣ ଘଟିବ ।



ହେଲେ ଏବେ କ'ଣ କିଛି ହୋଇପାରିବ ନାହିଁ ? କ'ଣ ଏ ଅସୁବିଧାକୁ ରୋକାଯାଇ ପାରିବ ନାହିଁ ? କ'ଣ ମଣିଷକୁ ବଞ୍ଚାଇ ହେବ ନାହିଁ ? ଆଶାର ଆଲୋକ କେଉଁ ଦିଗରେ ବି ଦେଖାଯିବ ନାହିଁ ?



ହେବ ।
ସବୁକିଛି ନିଶ୍ଚୟ ହେବ ।
ଏବେ ନିଜକୁ ସଜାଗ ରହିବାକୁ ହେବ ।
ବୁଝିସୁଝି ଆଗକୁ ଗୋଡ଼ ବଢ଼ାଇବାକୁ ହେବ ।
ଆଗରୁ ଆମେମାନେ ସବୁ ନଷ୍ଟ କରିଛେ ।
ଏବେ ଆମକୁ ଏହାକୁ ପୂରଣ କରିବାକୁ ପଡ଼ିବ ।
ଆମକୁ ଆମର ପରମ୍ପରାକୁ ରକ୍ଷା କରିବାକୁ ହେବ ।
ଏହି ଗଛ ଏବଂ ବଣ ଆମମାନଙ୍କୁ ଜୀବନ ଦେଇଛନ୍ତି ।
ଆଜି ଆମକୁ ସେମାନଙ୍କର ଆଦର କରିବାକୁ ହେବ ।
ଆମେ ତାଙ୍କର ଅପକାର କରିବା ଉଚିତ ନୁହେଁ ।
କେତେଗୁଡ଼ିଏ ଗଛ ତ ଆମକୁ କାଟିବାକୁ ପଡ଼ିବ । ତାହା ମାନେ ନୁହେଁ ସେଗୁଡ଼ିକୁ ମୂଳରୁ ଓପାଡ଼ି ଫୋପାଡ଼ି ଦେବା । ଯଦି ଆମେ ଗୋଟିଏ ଗଛ କାଟିବା, ତେବେ ଆଉ ପାଞ୍ଚୋଟି ଗଛ ଲଗାଇବା ଉଚିତ୍ । ଫଳ ଦେଉଥିବା ଗଛ, ଜାଳେଣି ପାଇଁ ଦରକାରୀ ଗଛ ଆମକୁ ଲଗାଇବାକୁ ହେବ । ଟସର ପୋକ ପାଳୁଥିବା ଗଛ ବି ଆମକୁ ଲଗାଇବାକୁ ପଡ଼ିବ ।





ଏବେ ବଢ଼ି ଚାଲିଥିବା ଜନ ପରିମାଣକୁ ରୋକିବାକୁ ହେବ। ନହେଲେ ଏତେଗୁଡ଼ାଏ ଲୋକଙ୍କର ଅବସ୍ଥା କ'ଣ ହେବ ? ସବୁରି ରହିବାଲାଗି ଘର, ଖାଇବାଲାଗି ଆହାର, ପିନ୍ଧିବାଲାଗି ଲୁଗାପଟା ନିହାତି ଦରକାର। ରୋଗ ଭଲହେବା ଲାଗି ଡାକତରଖାନା ବି ଦରକାର। ସବୁରିଙ୍କୁ ରୋଜଗାର ଦରକାର। ଆଜି ଆମକୁ ସଚେତନ ହେବାକୁ ପଡ଼ିବ। ଏଥିରେ ହିଁ ଆମ ସବୁରି ମଙ୍ଗଳ ହେବ। ଏହା ଫଳରେ ଆମର ଆଗାମୀ ଦାୟାଦ ମାନଙ୍କର ବିକାଶ ହେବ। ଜମି ରବର ନୁହେଁ ଯେ ତାକୁ ଟାଣି ବଢ଼େଇ ହେବ।





ଏହାର ସମାଧାନ ଲୋକମାନଙ୍କୁ ହିଁ କରିବାକୁ ପଡ଼ିବ । ଆମେ ସୁଖରେ ଜୀବନ କାଟିବା ବା ସାରାଜୀବନ ହଇରାଣ ହେବା, ଆମକୁ ଠିକ୍ କରିନେବାକୁ ହେବ ।

ଆମେ ସୁଖରେ ଜୀଇଁବାକୁ ଚାହୁଁ । ରୋଗରୁ ଦୂରେଇ ରହିବାକୁ ଚାହୁଁ । ତେଣୁ ଗଛ ଲଗାଇବା ନିହାତି ଦରକାର । ଆମେ ଯେଉଁଠି ରହିବା, ତାହାର ଆଖପାଖରେ ଗଛ ଲଗାଇବା ଉଚିତ୍ । ତାହାହେଲେ ଆମର ଆଗାମୀ ଦାୟାଦମାନେ ସୁଖ ଶାନ୍ତିରେ ରହିବେ ।



